୧୧ । ସମ୍ବଲେଶ୍ୱରୀଙ୍କ ଦୋଳ । ଛମା ଶିଂଘରି ଦେଖି ଯେ ନାହିଁ ଯେ ।
ତାଠାରୁ ଅଧିକା କାହିଁ ? ସୁଜନେ ହେ ।
୧୨ । ସମ୍ବଲ ପୁରର ଧନ୍ୟ । ବୈକୁଣ୍ଠମିଶ୍ରଙ୍କ ଅଳ୍ପ ବ ଚର୍ଚ୍ଚି ଯେ ।[୧]
ତେଜସ୍ୱୀ ଜେଥିଲେ ଜନ୍ମି । ସୁଜନେ ହେ ।
୧୩ । ଅମ୍ବାଭୋନା ଅଞ୍ଚଳରେ । କେଦାର ନାଥେ ବସନ୍ତ ସୁଖରେ ଯେ ।
ପଥର ଗଡ଼ ମଝିରେ । ସୁଜନେ ହେ ।[୨]
୧୪ । ଝାର୍ତ୍ତି ପୁରେ ଗଜଝାର୍ତ୍ତି । ବ୍ରାହ୍ମଣଙ୍କ ଅଛି ଶାସନ ସ୍ଥିତି ଯେ ।
ଧନ୍ୟ ସମ୍ବଲ କୀର୍ତ୍ତି । ସୁଜନେ ହେ ।
୧୫ । ଅଟଳପୁର ଶାସନେ । ଦେଖିବାକୁ ଭ୍ରମେ ଯାତ୍ରୀଗଣେ ଯେ ।
ଚଳିଯାଅନ୍ତି ବହନେ । ସୁଜନେ ହେ ।[୩]

—o—

## ମହାରାଜା ମନସା ।

ରାଗ—ବଙ୍ଗଳାଶ୍ରୀ ।

(୧)

ଅହେ ଭାଇମାନେ ମନାସ ବଚନେ
ସମ୍ବଲର ମହାରାଜା ।
ଅଷ୍ଟାଦଶ ରାଜା କର ଦୈନ୍ୟ ଦେଇ
କରୁଥିଲେ ଯାଙ୍କୁ ପୂଜା ।

---

୧ । ସ୍ୱର୍ଗୀୟ ବୈକୁଣ୍ଠନାଥ ମିଶ୍ର ତହସିଲଦାର ଓ ମୁନ୍‌ସଫ ହୋଇଥିଲେ ।

୨ । ଅମ୍ବାଭୋନା ସ୍ଥାପୟିତା ଦକ୍ଷିଣ ରାୟ ଦେଓ୍ୱାନଙ୍କ ଦ୍ୱାରା ପ୍ରତିଷ୍ଠିତ "କେଦାରନାଥ" ମହାଦେବଙ୍କ ଜାଳପାଲି ଓ ଘଣ୍ଟାବହାଲି ନାମକ ଦୁଇଗୋଟି ଗ୍ରାମ ଲାଗିଅଛି । ଏହି ମନ୍ଦିରକୁ ବେଷ୍ଟନ କରି ଗୋଟିଏ ପଥର ଗଡ଼ ଅଛି ।

୩ । ସମ୍ବଲପୁର ମହାରାଜା ଅଜିତ୍ ସିଂହଙ୍କ ଦ୍ୱାରା ସ୍ଥାପିତ ଅଟଳପୁର ଶାସନ ଦେଇ ଝାରସୁଗୁଡ଼ା ରେଲ୍ ଲାଇନ୍ ଯାଇଅଛି ।

ସମ୍ବଲପୁରର          ତୃତୀୟ ନୃପତି
ମହାବୀର ବଳସିଂହ ।
ସୋମଲାଇ ଦେଖି          ଦୁର୍ଗ ଯେ ସ୍ଥାପିଣ
ଦେଲେ ସେ ପୁରର ନାମ ।
ବଳଭଦ୍ର ସାଏ          ବଳିଅର ସିଂହ
ପୁଣ୍ୟଯଶା ଛତ୍ରସାଏ ।
ଜୟନ୍ତ ଅଜେୟ          ନାରାୟଣ ସିଂହ
ଅବା , ଅଜିତ ସାଏ ।

( ୩ )

ସେ ହୃଦୟ ନାରାୟଣ—          ଦେଓ ଶିଶୁ—
ବଳାନ୍ଦ୍ର , ନୃସିଂହ ।
ମୋହନ କୁମାରୀ          ବଳଭଦ୍ର ସାଏ
ଅଥବା ଜୟନ୍ତ ସିଂହ ।
ଶେଷ ମହାରାଜା          ନାରାୟଣ ସିଂହ
କିବା ବୀର ଛତ୍ରସାଏ ।
ତୁମ୍ଭ ମନାସିବା          ମଧ୍ୟେ ଅନ୍ତ୍ୟ କି
ଏଠାରେ ସେ ମହାତ୍ମାଏ ? ।

( ୪ )

ମୋହନ କୁମାରୀ          ମଧୁକର ସାଏ
କିମ୍ବା ମହାରାଜ ସାଏ ।
ବଳିଅର ସିଂହ          କିବା ନୃସିଂହ
ଯାଙ୍କୁ ତୁମ୍ଭ ମନ ଯାଏ ।
ମହାରାଷ୍ଟ୍ରଙ୍କର          କଣ୍ଟକ ଶାସନ—
ଦୃଢମନ ଭୂପସିଂହ ।
ମହାରାଜା ବୀର          ଛତ୍ରସାଏ ଅବା
କିବା ନାରାୟଣ ସିଂହ ।

(୮)

ମଧୁକର ଶାହ — ନାରାୟଣ ସିଂହ
ମୋହନ କୁମାରୀ ରାଣୀ ।
ଓ ଅଜିତ ସିଂହ — ସେ ଜୟନ୍ତ ସିଂହ
ଛାଗୁ ଲେଖାଦ୍ର ପୁତ୍ରୀ ।
ଅଭୀ ଦୂ ସିଂହ — ଓ ଅଭନ୍ତୁ ସିଂହ
ଏମାନଙ୍କ ମଧ୍ୟୁଁ ଜଣେ ।
ମନାସିଲେ ଙ୍କଁ — ଦେବ ବେ ବଚନେ
ବଂଶମୂ ନ ବହ ମନେ ।

ଉତ୍ତର ।

ଚାନ୍ଦଶାର ନେତା— ରାଜା ନରସିଂହ
ଅର୍ଦ୍ଧ ରାଜ୍ୟ ଦେଲେ ଭାଗ ।
ମହାନଦୀ ଲଙ୍ଘି — ସୋମଲଞ୍ଜ ପୁର—
ସ୍ଥାପି ରାଜା ହେଲେ ଅଟ ।
ଚଉରାଶ ପଞ୍ଚ— ଗଲଣ ସାଲରୁ
ଅଠଗଲଣ ବରଷ ।
ସେଉଁ ବଳରାମ — ଦେଓ ରାଜା ଥିଲେ
ତାଙ୍କ କି ଭୂତ୍ୟ ମନ ସ ?

---

୧ । ସମ୍ବଲପୁର ପ୍ରଥମ ମହାରାଜା ବଳରାମଦେଓ ସ୍ୱୀୟ ଅଗ୍ରଜ ପାଟଣାର ରାଜା ନରସିଂହ ଦେବଙ୍କଠାରୁ ନିଜ ସହାର୍ଯ୍ୟର ପୁରସ୍କାର ସ୍ୱରୂପ ଅଙ୍ଗନଦୀରୁ ମହାନଦୀ ପର୍ଯ୍ୟନ୍ତ ପ୍ରଦେଶ ପାଇ ପ୍ରଥମେ ବରଗଡ଼ ପରେ ଚନ୍ଦ୍ରପୁରରେ ରହି ମହାପାରଧୋଇ ମୂଷମ୍ବା କହ୍ନି କହ୍ନି ଦେବୀମୂର୍ତ୍ତି ଦେଖି ଅରଣ୍ୟ କାଟି ରାଜଧାନୀ ସ୍ଥାପନ କଲେ । ସେ ୧୫୭୫ ରୁ ୧୫୯୫ ସାଲ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । କେତେକ ଲୋକଙ୍କ ମତରେ ତାଙ୍କ ଶାଶୁ ସୁବର୍ଣ୍ଣା ମହାରାଣୀଙ୍କ ସହିତ ଯୁଦ୍ଧ କରିବା, ସେହି ସ୍ଥଳରେ ଜୟୀ ହେବା ଏବଂ ଅନନ୍ତ ଶଯ୍ୟାଦେବୀଙ୍କ ସହ ବହୁ ସମ୍ପଦ ପ୍ରାପ୍ତ ହେବା ତାଙ୍କ ରାଜତ୍ୱର ପ୍ରଧାନ ଘଟଣା ।

୧

ସ୍ୱର୍ଣ୍ଣ କଳସିନା　　　ସୋମଲା* ମନ୍ଦିର
ସ୍ମରୁଅଛି ଯାର ନାମ ।
ଛତିଶ ବରଷ　　　ପାଳିଲେ ଯେ ନୃପ
ସୋମଲେଈ ପୂଜା ଠାମ ।

୨

ସେ ହୃଦୟ ନାଥ—　　　ମୃଣ ଦେଓ ନୃପ
ବଳରାମଙ୍କ ପୁତ୍ର ।
ତାଙ୍କ ସମୟରେ　　　ସୋମଲେଈ ହେଲେ
ଗ୍ରାମେ ଗ୍ରାମେ ସଂପୂଜିତ ।

୩

ପଞ୍ଚଦଶ ଶତ　　　ଛବିଶ ସାଲରୁ
ତିରିଶ ବର୍ଷ ପର୍ଯ୍ୟନ୍ତ
ପାଳି ଥିଲେ ଯେଉଁ　　　ବଳଭଦ୍ର ସାଏ
ତାଙ୍କୁ ପାଶୋର କେମନ୍ତ ?

୪

ପନ୍ଦରଶ' ଛପନ—　　　ଅଶୀ ସାଲ ଯାଏ

---

୧ । ବଳରାମ ଦେଓଙ୍କ ପୁତ୍ର ହ୍ରିଦେଇ (ହୃଦୟ) ନାରାୟଣଦେଓ ମହାରାଜା ୧୪୯୦ରୁ ୧୫୨୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସିଂହାସନାରୋହଣ କରିଥିଲେ । ତାଙ୍କ ସମୟରେ ସୋମଲେଈ ମନ୍ଦିର ନିର୍ମାଣ ଏବଂ ରାଜ୍ୟରେ ଗ୍ରାମେ ଗ୍ରାମେ ସୋମଲେଈ ଦେବୀଙ୍କ ସ୍ଥାପନ କାର୍ଯ୍ୟ ହୋଇଥିଲା ।

* ସୋମଲା—ସୋମ ( ଚନ୍ଦ୍ର ) + ଲା ( ଯୁକ୍ତାର୍ଥରେ ଅଥବା ସୋମବଂଶୀୟମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ଅର୍ଥରେ ) । ସୋମଳେଶ୍ୱରୀ , ସୋମଲେଈ ।

୩ । ହ୍ରିଦେଇ ନାରାୟଣ ଦେଓଙ୍କ ପୁତ୍ର ବଳଭଦ୍ର ସାଏ ୧୫୨୬ରୁ ୧୫୫୬ ସାଲ ପର୍ଯ୍ୟନ୍ତ ବା ୩୦ ବର୍ଷ ରାଜ୍ୟ ଶାସନ କରିଥିଲେ । ଏହାଙ୍କ ଦ୍ୱାରା ଚନ୍ଦ୍ରପୁରା ବଳଭଦ୍ର ଠାକୁର ସ୍ଥାପିତ ହୋଇ ଅଛନ୍ତି ।

୪ । ବଳଭଦ୍ର ସାଏଙ୍କ ପୁତ୍ର ମଧୁକର ସାଏ ୧୫୫୬ ରୁ ୧୫୮୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏହାଙ୍କ ସମୟରେ ରାଇପୁର ସୋନପୁର ଆଦି କେତେକ ରାଜ୍ୟ ଅଧିକୃତ ହୋଇଥିଲା ।

ରହିଣ ବସନ୍ତ କାଳି ।
ଶୁଣାଥିଲେ ଯେଉଁ     ମଙ୍ଗଳର ଗାଏ
ତାଙ୍କୁ କିବ ଭୁଲେ ଭଲ ?

*

ଛାଡ଼ିଲେହେଁ ଯାଇ     ଯାର ଧର୍ମ୍ମେ ଭୂମି
ମନ ପଡୁଥାଏ ତାଇ ।
ତେଣୁ ବାନ୍ଧିଥିଲା     ମନାସିଲ ଅନ୍ତ
ମହାରାଜା ମହାବଳୀ
ଅଷ୍ଟାଦଶ ଦୁର୍ଗ     ଯାଙ୍କ ବାହୁବଳେ
ହୋଇଥିଲେ ପଦାନତ ।
ଗୋପାଳଙ୍କ ମଠ     ସ୍ଥାପିଲେ ନଗରେ
ଖଞ୍ଜିଥିଲେ ସଦାବ୍ରତ ।

---

* । ବଳିଆର ସିଂହ—୧୬୮୨ ରୁ ୧୬୨୨ ପର୍ଯ୍ୟନ୍ତ ୪୦ ବର୍ଷ । ଏ ସମ୍ବଲପୁରର ମହାରାଜାମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ଥିଲେ । ଏହାଙ୍କ ବାହୁବଳରେ ପ୍ରାୟ ଅଠରଗଡ଼ ରାଜ୍ୟ ଅଧିକୃତ ହୋଇଥିଲା । ସମ୍ବଲପୁର ନଗରୀର ସୁଦୃଢ଼ ଦୁର୍ଗ ଏବଂ ରାଜବାଟୀ ଏହାଙ୍କ ସମୟରେ ପ୍ରସ୍ତୁତ । ପ୍ରସିଦ୍ଧ ବୌଦ୍ଧ ଅଭିଯାନ ଏହାଙ୍କ ରାଜତ୍ୱର ପ୍ରଧାନ ଘଟଣା । ୧୨ ବର୍ଷ ପର୍ଯ୍ୟନ୍ତ ବୌଦ୍ଧ ଦୁର୍ଗ ଅବରୁଦ୍ଧ ହୋଇ ବଳିଆର ସିଂହଙ୍କ ଦ୍ୱାରା ବିଧ୍ୱସ୍ତ ହୋଇଥିଲା । ଗୋପାଳଜୀ ମନ୍ଦିର—ମଠ ଏବଂ ବଳିଆରପୁର ଗ୍ରାମ ବଳିଆର ସିଂହଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ଏପରି ଜନଶ୍ରୁତି ଅଛି ଯେ ବଳିଆର ସିଂହଙ୍କ ଭାଇ ଦଳିଆର ସିଂହ ସରଣ୍ଡା ପ୍ରଗଣା ଭୋଗ କରି ସେଠାରେ ଦୁର୍ଗ ସ୍ଥାପନ କରି ରହୁଥିଲେ । ପୂଜାରିପାଲିଠାରେ ଦଳିଆର ସିଂହଙ୍କ କୀର୍ତ୍ତି ଦେଖିଲେ ମନ ବିସ୍ମୟାଭିଭୂତ ହୋଇ ଯାଏ । ବର୍ତ୍ତମାନ ସୁଦ୍ଧା ଅନେକ ଦେବମୂର୍ତ୍ତି ସେଠାରେ ରହିଅଛି । ଅମ୍ବାଭୋନାର ଚଉହାନ ଦଳିଆର ସିଂହ ତାଙ୍କର ସାମୟିକ ନିବାସ ପାଇଁ ପ୍ରସ୍ତୁତ କରାଇଥିଲେ ।

ପାଳ ଥିଲେ ପ୍ରଜା — ପୁଅ ନିର୍ବିଶେଷେ
ଯେବା ନୃଜଣ ଦଅଷ୍ଟ ।
ସେହି ନବ-ସୃଜା — ବଳଥର ସିଂହେ
ସୃଇଛୁ ତୁମ୍ଭ ମାନସ ।

୨

ମହାବଳୀ ବଳ — ଥରଙ୍କ କୁମାର
ନୃଉମାସ ମାଧ ଯେହୁ ।
ବସିଥିଲେ ସ୍ଥାୟୀ — ରହୁ ଟିଂହାସନେ
ତାନ୍ତ ରହି ସିଂହ ସେହୁ ।

୨

ସୁଦୀର୍ଘ ଆର୍ଦ୍ଧିକା — ସେ "ଛତ୍ରସାଗର"
ଘୋଷଇ ଯାରଙ୍କାରଭ ।
ବଳଥରଙ୍କର — ଅଭବ୍ର ଦୁର୍ଗଯେ
କରିଥିଲେ ସମାପତ ।
ଷୋଳଶ ବାଉଶ — ସାଲୁଁ ଅଠତିଶ
ବର୍ଷ ଯେ ପାଳିଲେ ଯନ୍ତ୍ର ।
ସେହି ଧର୍ମ ଛତ୍ର — ପଣ ଛତ୍ର ସାଏ
ମନାସିଛ ତୁମ୍ଭେ ପନ୍ତ ?

---

୨ । ରତ୍ନସିଂହ—୯ ମାସ ମାତ୍ର ରାଜତ୍ୱ କରି ପରଲୋକ ଗମନକଲେ ।

୨ । ଛତ୍ରସାଏ—୧୬୨୨ ରୁ ୧୬୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରି-ଥିଲେ । ଏ ବଳଅର ସିଂହଙ୍କ ଅଭବ୍ର ଦୁର୍ଗର ଅବଶିଷ୍ଟ କାର୍ଯ୍ୟ ଶେଷ କରିଥିଲେ । ଦୁର୍ଗର ପରଖା ବିଶେଷତଃ "ଛତ୍ରସାଗର" ଏହାଙ୍କ କୀର୍ତ୍ତିସ୍ତମ୍ଭ ରୂପେ ଅଦ୍ୟାପି ରହିଅଛି । "ଛତ୍ରସାଗର" ଛଡ଼ା ଅନେକ ବଡ଼ ବଡ଼ ପୁଷ୍କରଣୀ ଏହାଙ୍କ ରାଜତ୍ୱ ସମୟରେ ଖୋଳା ହୋଇଥିଲା । "ଚନ୍ଦ୍ରଶା ମଞ୍ଜରୀ" ଏହାଙ୍କ ସମୟରେ ରଚିତ ।

୮

ପୁଣ୍ୟ ଶାସନଁ ଯେ ବ୍ରାହ୍ମଣ ଅଣାଇଁ
ବସାଇ ଥିଲେ ଶାସନ ।
ରେଲ୍ ପଥେ ଗଲେ ଦେଖା ପଡ଼େ ଯାର
"ଅଜିତ ପୁର ଶାସନ" ।
ଗୋପୀନାଥ ନାମ — କୃଷ୍ଣଙ୍କ ମନ୍ଦିର
ଘୋଷଇ ଯାଙ୍କ କୀର୍ତ୍ତିବାଣୀ ।
ସେହି ଧର୍ମ୍ମପ୍ରାଣ ଅଜିତ ସିଂହଙ୍କୁ
ସୌଭାଗ୍ୟେ ଅନୁମାନି ।

୯

ଜାମ୍ବୁର ବଂଶ ସେ ଅଜିତସିଂହ
ପାଳିଲେ ସମ୍ବଲପୁର ।
ତାଙ୍କ ଜ୍ୟେଷ୍ଠସୁତ ସେ ଅଭୟ ସିଂହ
ମହାବୀର ମହାଶୂର ।
ଯାଙ୍କ କାର୍ଯ୍ୟ ଆଗେ ତିଷ୍ଠି ନ ପାରିଲେ
ମହାରାଷ୍ଟ୍ର ମହାବୀରେ ।

---

୮ । ଅଜିତ ସିଂହ—୧୬୯୫ ରୁ ୧୭୬୬ ପର୍ଯ୍ୟନ୍ତ ୭୧ ବର୍ଷ ରାଜତ୍ୱ କରିଥିଲେ । ଏ ସମ୍ବଲପୁର ମହାରାଜାମାନଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକକାଳ ରାଜା ହୋଇଥିଲେ । ଏହାଙ୍କ ସମୟରେ ସମ୍ବଲପୁର ରାଜ୍ୟରେ ଶାନ୍ତି ବିରାଜିତ ଥିଲା । ପ୍ରଜାମାନେ ଅତିସୁଖରେ ଦିନ ଯାପନ କରୁଥିଲେ । ଏ ପୁରୀଜିଲ୍ଲାରୁ ନୈଷ୍ଠିକ ବ୍ରାହ୍ମଣମାନଙ୍କୁ ଅଣି ସହରରେ ଗୋଟିଏ ବ୍ରାହ୍ମଣ ଶାସନ ବସାଇଥିଲେ । ସେହି ଅଜିତପୁର ଶାସନ ବର୍ତ୍ତମାନ " ଶାସନ ଷ୍ଟେସନ " ନାମରେ ସୁପରିଚିତ ।

୯ । ଅଜିତସିଂହଙ୍କ ତିନିପୁତ୍ର ଥିଲେ । ୧ ମ ଅଭୟସିଂହ, ୨ ୟ ପଦ୍ମସିଂହ ୩ୟ ଛତ୍ରପତି (କୃପିତ)ସିଂହ । ଅଭୟସିଂହ—୧୭୬୬ ରୁ ୧୭୭୮ ପର୍ଯ୍ୟନ୍ତ ରାଜ୍ୟ ଶାସନକରି ଅପୁତ୍ରକ ହୋଇ ମାନବଲୀଳା ସମ୍ବରଣ କଲେ । ନାଗପୁରର ରାଜା-ରଘୁଜି ଭୋଁସଲାଙ୍କ ଲେଖେ ଗୁରୁଏ ତୋପ ମହାନଦୀ ବାଟେ କଟକରୁ ପଠା-

ସପ୍ତଦଶ ଶତାବ୍ଦୀରୁ  ଯେ ଷୋଡ଼ଶ
ବର୍ଷ ସକଳୁ ମଧ୍ୟରେ ;
ମହାରଥୀଙ୍କର  ତୋପ ଯା ଅଦେଶେ
"ଗୁମ୍‌ଦରେ" ଗୁମିଗଲା ।
ସେହି ମହାରାଜା  ଅଭୟ ସିଂହଙ୍କୁ
ମନେ ମନାସିବୁ ଭଲ ।

୧୦

ଅଯୁଦ୍ଧେ ହୋଇ  ଅଭୟ ମଣ୍ଡଳେ
ଅନୁଜ ଜୟନ୍ତ ବନ୍ଦୀ ।—
ହୋଇ ଚନ୍ଦ୍ରପୁରେ  ବସୁଥିଲେ ବାସ
ସେ ଅଗ୍ରଜ ପ୍ରତିଦ୍ୱନ୍ଦୀ ।
ତେଣୁ ମନ୍ତ୍ରିଗଣ  ପଦ୍ମପୁରୁ ଅଣି
"ମା କୋଷାଣୀ"ଙ୍କ ନନ୍ଦନେ ।
ରାଜା କଲେ ଶିଶୁ—  ବଲଭଦ୍ର ସାଏ
ତାଙ୍କୁ ମନାସିବୁ ମନେ ।

---

ଯାଇଥିଲା । ଅଭୟସିଂହ ତାହା ଜାଣି ପାରି "ଗୁମ୍‌ଦର"ରେ ସେହି ତୋପବାହୀ ପଦ୍ମ ଅନାନ ବୁଡ଼ାଇଦେଇଥିଲେ । ତେଣୁ ମରହଟ୍ଟାମାନେ ସମ୍ବଲପୁର ଅକ୍ରମଣ କଲେ, କିନ୍ତୁ ପରାସ୍ତ ହୋଇ ଫେରି ଯିବାକୁ ବାଧ୍ୟ ହୋଇଥିଲେ ।

ଅଭୟ ସିଂହଙ୍କର ସହୋଦର ଜୟନ୍ତସିଂହ ଭ୍ରାତୃବିରୋଧୀ ହୋଇ ସମ୍ବଲପୁର ନଗରବାସୀ [illegible] ରାଜବିଦ୍ରୋହୀମାନଙ୍କ ସହିତ "ଦଳଦଳ" ନାମକ ସ୍ଥାନରେ ରହୁଥିଲେ। ମରହଟ୍ଟାମାନେ ଦଳଦଳରୁ ଜୟନ୍ତ ସିଂହଙ୍କୁ ଧରି ନେଇ, ଚନ୍ଦ୍ରମଣ୍ଡଳ ଚନ୍ଦ୍ରପୁରରେ ବନ୍ଦୀ କରି ରଖିଥିଲେ ।

୧୦ । ଅଭୟସିଂହଙ୍କ ଅପତ୍ୟ ନ ଥିଲା । ମଧ୍ୟମ ପଦ୍ମସିଂହ [illegible] ହତ ଏବଂ କନିଷ୍ଠ ଜୟନ୍ତ ସିଂହ ମରହଟ୍ଟାମାନଙ୍କ ଦ୍ୱାରା ବନ୍ଦୀ ହେବାରୁ ତତ୍କାଳୀନ ଦେୱାନ ସଦାଶିବ ପଦ୍ମପୁରବାସୀ ଚୌହାନବଂଶୀୟ [illegible] ଶିଶୁ ବଳଭଦ୍ରସାଏଙ୍କୁ ଅଣି ମହାରାଜା କରି ସ୍ୱୟଂ ସର୍ବେସର୍ବା ହେଲେ । ପଦ୍ମପୁର ଓ ଚନ୍ଦ୍ରପୁର ସମ୍ବଲ-

୧୧

ଚନ୍ଦ୍ରପୁର ବନ୍ଦୀ— ଯହୁଁ ପଳାଇ ସେ
ଛେଦେ ବଳଭଦ୍ର ଶିର ।
ସ୍ୱାର୍ଥବୁଦ୍ଧ ଜାତ ସ୍ୱୀୟ ସିଂହାସନେ
ବସିଲେ ହୋଇ ଅଧୀର ।
ଯାଙ୍କୁ ମହାରାଷ୍ଟ୍ରେ ପୁଣି କାଢ଼ିନେଲେ
ଦୁର୍ଗ କରି ଅଧିକାର ।
ସେ ଜୟନ୍ତ ସିଂହ ଜୟନ୍ତ ଶାସନ
ଘୋଷେ ପ୍ରାୟଶ୍ଚିତ ଯାର ।

୧୨

ଯେବେ ପୁତ୍ର ସହ ଜୟନ୍ତ ନୃପତି
ବନ୍ଦୀ ହେଲା କାରାଗାରେ ।
ସେ ଅଠର ବର୍ଷ ସମ୍ବଲ କାନ୍ଦିଲା
ମହାରାଷ୍ଟ୍ର ଅତ୍ୟାଚାରେ ।

---

ପୁର ରାଜାଙ୍କର ଜଣେ ଖାଇଜାଗାଦାର ଥିଲେ । ଅଦ୍ୟାପି ସେମାନଙ୍କର ଦୁର୍ଗର ଭଗ୍ନାବଶେଷ ରହିଅଛି । ବାଳକ ବଳଭଦ୍ର ସାଏଙ୍କ ନାମରେ ୧୭୪୮ ରୁ ୧୭୫୦ ପର୍ଯ୍ୟନ୍ତ ଦୁଇ ବର୍ଷ ରାଜ୍ୟ ଥିଲା ।

୧୧ । ଜୟନ୍ତ (ଜୟସିଂହ) ସିଂହ ଚନ୍ଦ୍ରପୁରରୁ ପଳାଇ ଆସି ଶାରଙ୍ଗଗଡ଼ର ରାଜାଙ୍କ ସାହାଯ୍ୟରେ ସଦାଶିବ ଦେବାନଙ୍କ ଦ୍ୱାରା ପରିଚାଳିତ ସମ୍ବଲପୁର ସୈନ୍ୟକୁ ପରାଜିତ ଏବଂ ବାଳକ ବଳଭଦ୍ର ସାଏ ଓ ସଦାଶିବ ଦେବାନଙ୍କ ଶିରଚ୍ଛେଦନ କରି ୧୭୫୦ ରେ ସିଂହାସନାରୋହଣ କଲେ । ଏ ଶାରଙ୍ଗଗଡ଼ ରାଜାଙ୍କୁ କେତେକ ଖଣ୍ଡ ଗ୍ରାମ ପୁରସ୍କାର ଦେଇଥିଲେ । ସେ ସନନ୍ଦ ଉକ୍ତ ଓ-ଡ଼ିଆ ଚଳାବା ଶାରଙ୍ଗଗଡ଼ର ଦଖଲରେ ରହିଅଛି । ଜୟନ୍ତ ସିଂହଙ୍କ ସମୟରେ ମହାରାଷ୍ଟ୍ରମାନେ ପୁନର୍ବାର ସମ୍ବଲପୁର ଆକ୍ରମଣ କଲେ । ଜୟନ୍ତସିଂହ, ଜୟନ୍ତପୁର ଶାସନ ବସାଇ ଅଛନ୍ତି ।

୧୨ । ଅନେକ ମାସ ପର୍ଯ୍ୟନ୍ତ ସମ୍ବଲପୁର ଦୁର୍ଗ ଅବରୁଦ୍ଧ ହୋଇ, ମହାରାଷ୍ଟ୍ରମାନଙ୍କ ଦ୍ୱାରା ଅଧିକୃତ ହୋଇ ପାରିଲା ନାହିଁ । ପରେ ମୋ.ଗିର୍ଙ୍ଗା ଓ

ସେ ମହାରାଷ୍ଟ୍ର,    ନିଯୁକ୍ତ ଶାସକ
ଭୂପସିଂହେ କର୍ଣ୍ଣା ସ୍ତବ ।
ଅଠର ଶଅରୁ    ଅଠର ବରଷ
ଶାସନେ ଥିଲା ତାହାର ।

୧୭

ଯହିଁ ପିତା ପୁତ୍ରେ    ଚୁନାର ଦୁର୍ଗାରେ
ଅଣିଲେ ଉପଦ୍ରେ ନେଉଗ ।
ବରଷକ ଅନ୍ତେ    ଜୟନ୍ତ ମରନ୍ତେ
ପୁତ୍ରହେଲେ ଅଧୀଶ୍ୱର ।
ଅଷ୍ଟାଦଶ ଶତ୍ୟ    ଇଂରାଜଙ୍କୁ ଦେଇ
ନାମ ମାତ୍ର ଯେଉଁ ସାଏ ।
ନଅ ବର୍ଷ ମାତ୍ର    ସମ୍ବଲ ପାଇଲେ
ସେହି ମହାରାଜ ସାଏ ।

---

ଜଗାଖାଁ ନାମକ ମୁସଲମାନ ପ୍ରହରୀ ଜୟନ୍ତଙ୍କ ବନ୍ଦୀାବସ୍ଥା ରଚ୍ଛାରେ ଥାଇ ଉନ୍ମୁକ୍ତ ହେବାରୁ ମରହଟ୍ଟାମାନେ ଅକସ୍ମାତ୍ ନଗର ମଧ୍ୟରେ ପଶି ଜୟନ୍ତ ସିଂହ ଓ ତାଙ୍କପୁତ୍ର ମହାରାଜ ସାଏଙ୍କୁ ବନ୍ଦୀକରି ଚୁନାରୁ ନେଇଗଲେ । ସେହି ୧୮ ବର୍ଷ କାଳ ମରହଟ୍ଟା ନିଯୁକ୍ତ ଶାସନ କର୍ତ୍ତା ଭୂପସିଂହଙ୍କଦ୍ୱାରା ସମ୍ବଲପୁରରାଜ୍ୟ ପରିଚାଳିତ ହୋଇଥିଲା ।

୧୭ । ୧୮୧୭ ସାଲରେ ଇଂରେଜସେନାପତି ମେଜରରଫ୍‌ସିସାହେବ ଜୟନ୍ତ ସିଂହ ଓ ମହାରାଜ ସାଏଙ୍କୁ ଚୁନାରୁ ମୁକ୍ତକରି ଆଣିବାରୁ ଜୟନ୍ତ ପ୍ରାୟ ୧ ବର୍ଷ ରାଜାହୋଇ ମୃତ ହେଲେ । ତେଣୁ ଇଂରାଜ ଗବର୍ଣ୍ଣମେଣ୍ଟ ମହାରାଜସାଏଙ୍କୁ ଖାସ ସମ୍ବଲପୁରର ରାଜାକରି ତାଙ୍କଠାରୁ ଅଠରବାକ୍ୟ ପାଇଲେ ।

ମହାରାଜ ସାଏ ୧୮୧୮ ରୁ ୧୮୨୭ ପର୍ଯ୍ୟନ୍ତ ରାଜା ହୋଇଥିଲେ । ଏ ନାମମାତ୍ର ମହାରାଜାଥିଲେ

୧୪

ଅପୁତ୍ରକ ହୋଇ ମଲେ ନୃପତି
ଅଠର ଶ ସତାଇଶି—
ଗ୍ରୀଷ୍ମାବଧିରୁ ସାତ ବର୍ଷ ଯାଏ ରାଜ୍ୟ
ପାଳିଲେ ଯେଉଁ ମହିଷୀ ।
ନାନା ଅତ୍ୟାଚାର ପନ୍ଥୀ ସେହାଲେ
କଳିହେଲେ ଦର୍ମିରସ୍ତ ।
ମାନସେ ମନାସି ଅଛୁ ହେଁ ସାଧୁ
ସେହି ମୋହନ କୁମାରୀ ।

୧୫

ସ୍ୱତ୍ୱବାଦ ପାଇଁ ହେଲେ ଚଣ୍ଡଗୋଳ
ସୁରେନ୍ଦ୍ର ଉଜ୍ଜ୍ୱଳ ଆତ୍ମା ।
ହେତେ ଜମିଦାର ଇଂରାଜ ବନ୍ଧୁଙ୍କ
ଉଠିହେଲେ ପ୍ରତିବାଦୀ ।
ସୁହୃଙ୍ଗ ଜାତ ବୃଦ୍ଧ ନାରାୟଣ—
ସିଂହ ବସି ସିଂହାସନେ ।
ପନ୍ଦର ବରଷ କାଟି ଅପୁତ୍ରକେ
ଗଲେ ଶମନ ସଦନେ ।
ଅଠରଶ ଅଠାବନ ଗ୍ରୀଷ୍ମାବଧିରୁ
" ଖାଲ୍ସା " ନାମ ଗଲା ଲଭି ।
ନବ ଉନ୍ନତିରେ ସମ୍ବଲ ମାତିଲା
ବ୍ରିଟିଶ ଶାସନ ଲଭି ।



୧୪ । ମୋହନକୁମାରୀ ରାଣୀ—କମ୍ପାନି ସରକାର ମହାରାଜ ସାଇଁ ଅପୁତ୍ରକ ହୋଇ ଘୋଷଣା କରି ରାଣୀ ମୋହନ କୁମାରୀଙ୍କ ନାମରେ ୧୮୨୭ ରୁ ୧୮୩୩ ସାଲ ପର୍ଯ୍ୟନ୍ତ ରାଜ୍ୟ ଚଳାଇଥିଲେ । ସେ ସମୟରେ ମରହଟ୍ଟାମାନଙ୍କର ଉପଦ୍ରବ ଓ ପ୍ରଥମ ଖଣ୍ଡ ଗୋଳମାଳ ହୋଇଥିଲା ।

୧୫ । ବରପାଲି ଠାକୁରାଣୀଙ୍କ ନାରାୟଣସିଂହଙ୍କୁ ବଶୀଭୂତ ଅଣି ସମ୍ବଲପୁରର

# ଦେବତା ମନସା ।

## ରାଗ—ଦେଶୀ ।

(୧)

ସୋମଲଇ, ଜଗନ୍ନାଥ  ସୋମନାଥ, ଗୋପୀନାଥ
ଦେବ ମଦନମୋହନ, ଶ୍ରୀ ସୁରେଶ୍ୱରୀ ;
ଘଣ୍ଟେଶ୍ୱରୀ, ମାନେଶ୍ୱର,  ବଞ୍ଜାରୀ, ବାଲୁଙ୍କେଶ୍ୱର,
ଶ୍ରୀ କେଦାରନାଥ, ଦେବୀ ମାଣିକେଶ୍ୱରୀ ।
ପାଟଣେଶ୍ୱରୀ, ସ୍ୱପ୍ନେଶ୍ୱର ।
ପଶ୍ଚିମେଶ୍ୱର ଠିକଣ — ଗୋସାଇଁ ସୁତ ।

(୨)

ଗୋପାଳଜୀ, ମାନେଶ୍ୱର,  ବୃଦ୍ଧପୁର ସିଦ୍ଧେଶ୍ୱର,
ଶ୍ରୀ ମଦନ ମୋହନ, ଶ୍ରୀ ପାଟଣେଶ୍ୱରୀ ;
ବଞ୍ଜାରୀ, ଶ୍ରୀ ଜଗନ୍ନାଥ,  ଧୁଙ୍କଡ଼ୀ, କେଦାରନାଥ,
ହରିଶଙ୍କର, ପଶ୍ଚିମେଶ୍ୱରଙ୍କୁ ଯାଉ ।
ଦାମଲେଶ, ନୃସିଂହନାଥ ;
ସୁବର୍ଣ୍ଣମେରୁ, ଠିକଣ ଗୋସାଇଁ ସାଥ ।

(୩)

ସମଚଣ୍ଡୀ, ସୁରେଶ୍ୱରୀ,  ଗୋପାଳଜୀ, ମାହେଶ୍ୱରୀ,
ପଶ୍ଚିମେଶ୍ୱର, ସୁବର୍ଣ୍ଣମେରୁ ଆଉର ;
ସିଦ୍ଧେଶ୍ୱର, ଜଗନ୍ନାଥ,  ବାଲୁଙ୍କେଶ, ଗୋପୀନାଥ,
ଅନନ୍ତଶଯ୍ୟା, ମଦନ ମୋହନ ପୁର ।
ବିନ୍ଧ୍ୟବାସିନୀ, ସ୍ୱପ୍ନେଶ୍ୱର ;
ଚନ୍ଦ୍ର ଓ କେଦାରନାଥ, ହରିଶଙ୍କର ?।

---

ରାଜା କରାଯାଇଥିଲା । ସେ ୧୮୩୮ ରୁ ୧୮୪୯ ସାଲ ପର୍ଯ୍ୟନ୍ତ ନାମମାତ୍ର ରାଜା ହୋଇ ଅପୁତ୍ରକ ଅବସ୍ଥାରେ ମରନ୍ତେ ସମ୍ବଲପୁର ରାଜ୍ୟ, ବ୍ରିଟିଶ ସାମ୍ରାଜ୍ୟଭୁକ୍ତ ହେଲା । ଡାକ୍ତର କ୍ୟାଡ଼େନ୍‌ହେଡ଼ ସମ୍ବଲପୁରର ପ୍ରଥମ ଇଂରାଜ ଶାସନକର୍ତ୍ତା ଥିଲେ ।

(୮)

ପାଟଗଣ୍ଡା , ସ୍ୱପ୍ନେଶ୍ୱର , ସ୍ରମଚଣ୍ଡୀ , ବିଢ଼େଶ୍ୱର ,
ନୃସିଂହନାଥ , ଘଣ୍ଟେଶ୍ୱରୀ , ହରିଶଙ୍କର ;
ସ୍ରମଜୀ , କେଦାରନାଥ , ସୋମନାଥ , ଗୋପୀନାଥ ,
ଜଗନ୍ନାଥ , ବାଳେଶ୍ୱର , ବିମଳେଶ୍ୱର ।
ମାଣିକେଶ୍ୱରୀ , ଦଧିବାମନ ;
ଏ ଷୋଳ ଦେବଦେବୀଙ୍କୁ କଲଣା , ମନ ? ।

(୯)

ବୈଦ୍ୟନାଥ , ମାଣିକେଶ୍ୱରୀ , ଗୋପୀନାଥ , ସୁରେଶ୍ୱରୀ ,
ପଣ୍ଡିମେଶ୍ୱର ସ୍ରମଜୀ , ନୃସିଂହନାଥ ;
ସୁବର୍ଣ୍ଣମେରୁ , ଘଣ୍ଟେଶ୍ୱରୀ , ଅପର ମାଣିକେଶ୍ୱରୀ ,
ଠିକିସ୍ତ କୋଷାଣ୍ଡ , ତ୍ରିକଟେଶ୍ୱରୀ ସାଥ ।
ବିନ୍ଧ୍ୟବାସିନୀ , ଜଗନ୍ନାଥ ;
ମନାସ ହରିଶଙ୍କର , ଶ୍ରୀ ସୋମନାଥ ।

—:*୦*:—

# ଉତ୍ତର ।

## ଅଗ୍ନିଶାକ୍ଷର ।

(୧)

ସ୍ୱର୍ଣ୍ଣ-କଳସିନୀ, ପୂର୍ଣ୍ଣ—ସମ୍ବଲ—ଶାଳିନୀ ,
ଉର୍ଣ୍ଣି ବଳଦାଶୀ ଚୂର୍ଣ୍ଣି କରୁ ଅନ୍ଧଦର୍ପ ,
ମର୍ଦ୍ଦିଲେ ଯେ "ହୀସ୍ୱରଣ୍ଡ ବାଦସାହ"-ପନ୍ଥ—
ଅଷ୍ଟାଦଶ-ଗଡ଼-ଶିର-ମୁକୁଟ-କନକେ ;
ଶୁଭିଲା ଯା'ର ଶଣିଙ୍ଗା ରବ ଭଇରବେ ,
ବାତୁଳ-ବଳବ-ଦୃପ୍ତ , ମାତଙ୍ଗ-ବାହିନୀ—

ସ୍ୱର୍ଗିଜାର[1] ସଂଗ୍ରାମରେ ; ସ୍ୱର୍ଗଯାନ ସମ—
ହୋଇ ନ ପାରୁ, ଅର୍ପିଲ ଚହ୍ୱାନ୍ ଶୂରେ ;
ଯା'ପ୍ରସାଦେ ମହାବଳୀ, ବଳଅର ସିଂହ,
ଅଦ୍ଭୁତ ପରୀକ୍ଷା ଦେଇ, ଉତ୍କଳନାଥଙ୍କେ,[2]
ଲଭିଥିଲେ ତାଙ୍କଠାରୁ "ମହାରାଜ" ପଦ,
ମେଘ ଅଡ଼ମ୍ବର ଛତ୍ର, ପାଟଖଣ୍ଡା ସହ ;
ଯାହାର ନଗରେ ପୁଣି ସେ କୀର୍ତ୍ତି ମଣ୍ଡିତ—
ସୋମବଂଶ-ସୋମ, ଚନ୍ଦ୍ରୋପୂଜା-ସିନ୍ଧୁ-ଗର୍ଭେ—
ଚିରକାଳ ପାଇଁ ବୁଡ଼ିଗଲା ଅବହେଳେ ;
କାହିଁକି ସେ "ସମଲାଇ" ସମ୍ବଲେଶ୍ୱରୀ ଦେବୀ ।

(୨)

କନକାଭ ତପନାଭ କଳସ—ମଣ୍ଡିତ,
ସୁନ୍ଦର ମନ୍ଦିର ମଧ୍ୟେ ବସି ଯେ ବିଶ୍ୱପ୍ରେ
ନରେନ୍ଦ୍ର, ବ୍ରାହ୍ମଣଙ୍କ ସାମାଜିକ ଲୀଳା,
ଚିନ୍ତା, ଲୋକଙ୍କ ଦୁର୍ଗତି ଲୋକନାଥ[3] ସଙ୍ଗେ,
ନ୍ୟାୟ, ଅର୍ଥୀ—ପ୍ରତ୍ୟର୍ଥୀଙ୍କ[4] ବିଷମ ସାହସ,
ସତର୍କ ଶପଥ ଶୁଣି, ହୋଇ ଯେ ମଉନ,
" ଝକଝକ ଝଳମଳ "ଗ୍ରନ୍ଥ ରଚିଲେଣି ;
ଚିନ୍ତାନ୍ତକ ପୂର୍ତ୍ତିବନ୍ଧ ସେ " ବ୍ରହ୍ମପୁରାଙ୍କ " ? ।

---

୧ ସୁରଗୁଜା ।

୨ ଉତ୍କଳାଧୀଶ୍ୱର ଗଜପତିଙ୍କ ଠାରୁ ସମ୍ବଲପୁର ରାଜା ବଳଅର ସିଂହ ମେଘାଡ଼ମ୍ବର ଛତ୍ର ଓ ପାଟଖଣ୍ଡା ସହିତ " ମହାରାଜ " ଉପାଧି ଲାଭ କରିଥିଲେ । ମହାରାଜ ଛତ୍ରଦେଇ ନାରାୟଣ ଦେଓ, ସୋମଲାଇ ମନ୍ଦିରର ପ୍ରତିଷ୍ଠାତା ।

୩ ବ୍ରହ୍ମପୁରାଙ୍କ ଦକ୍ଷିଣ ପାଖରେ ଶ୍ରୀଲୋକନାଥ ମହାଦେବଙ୍କ ମନ୍ଦିର ଅଛି । ଏହି ମହାଦେବଙ୍କୁ ଘେନି ଝାଡ଼ୁଅପଡ଼ାର " ଶୀତଳଷଷ୍ଠୀ " ଯାତ୍ରା ହୁଏ ।

୪ ସମ୍ବଲପୁର ଜିଲ୍ଲାର ଅନେକ ମୋକଦ୍ଦମା ବ୍ରହ୍ମପୁରାଙ୍କ ସମ୍ମୁଖରେ ଶପଥ (କିରିଆ) ଦ୍ୱାରା କାଟ୍ତି ହୋଇଥାଏ । ଏହି ମନ୍ଦିର ମହାରାଜ ବଳଭଦ୍ରଦେଓଙ୍କ ଦ୍ୱାରା ସ୍ଥାପିତ ।

( ୩ )

ପାଟଣାର ଇଷ୍ଟଦେବୀ ଦୁଷ୍ଟ ସଂହାରିଣୀ ,
କଷ୍ଟ ନିବାରିଣୀ , ଅଷ୍ଟ—ମଲ୍ଲିକ—ବନ୍ଦିତା ,
ସ୍ୱବଂଶର ଇଷ୍ଟଦେବୀ ଶିଷ୍ଟାଗ୍ରଣୀ ନୃପ—
ବଳରାମ ଦେବ ଯାଙ୍କୁ ଆଣିଥିଲେ ସଙ୍ଗେ ;
ପ୍ରତିଷ୍ଠିତ ରାଜବାଟୀ ନିକଟେ ଆଜିଟେ ;
ପ୍ରଚଣ୍ଡ ପ୍ରତାପେ ଯାର , ଗର୍ବିଣୀ ରମଣୀ ,
ଗର୍ଭପାତ ଭୟେ ଯାନ୍ତି ନ ଥିଲେ ସମ୍ମୁଖେ ;
ନୂତନ "ପାଟମେଶ୍ୱରୀ" [୧] ସେ ପାଟଣେଶ୍ୱରୀ ।

( ୪ )

ସ୍ୱର୍ଗତା—ବିଜୟ—ଲକ୍ଷ୍ମୀ ସଙ୍ଗେ ସୁପ୍ରସନ୍ନେ,
ସୁଲଭେ ଯେ ହେଲେ ଲଭ୍ୟ ଭେଡ଼ନ ଘାଟରେ , [୨]
ପିତୃକୁଳ ଇଷ୍ଟଦେବ ମଣି ମହାରାଣୀ ,
ଆଣି ସଂସ୍ଥାପିଲେ ଯାନ୍ତୁ ଦୁର୍ଗ ଅନ୍ତସ୍ଥଳେ ;
ପୁଣି " ରାଣୀମଠ " ନାମେ ମଠପାଲି ଗ୍ରାମେ [୩]
ଜଳାଶୟ ଘେରି ତହିଁ ମଧ୍ୟେ ଦେବାଳୟେ—
ପ୍ରତିଷ୍ଠିଲେ ଯାଙ୍କୁ ; ଇଚ୍ଛା ଯେବେ ଦେଖ ଯାଇ
" ଅନନ୍ତ ଶଯ୍ୟାଙ୍କୁ " ଘନ କଅବଣ ପାଖେ ।

---

୧ ସାଧାରଣତଃ " ପାଟମେଶ୍ୱରୀ ଗୁଡ଼ି " ବୋଲି କହୁଥାନ୍ତି । ପାଟଣାର ସୈନ୍ୟ ପାଟଣେଶ୍ୱରୀ ମନ୍ଦିର ନିକଟରେ ରହୁଥିଲେ ।

୨ ଭେଡ଼ନ ନଦୀତଟରେ ସୁରଗୁଜ—ସମ୍ବଲପୁର ଯୁଦ୍ଧ ହୋଇଥିଲା ; ସୁରଗୁଜାର ରାଜା ତାଙ୍କର ଇଷ୍ଟଦେବତା " ଅନନ୍ତଶଯ୍ୟା "ଙ୍କୁ ଛାଡ଼ି , ଅସ୍ତବ୍ୟସ୍ତ ହୋଇ ପଳାଇ ଯାଇଥିଲେ ।

୩ ଜଥଗ୍ର ନିକଟରେ "ମଠପାଲି" ଗ୍ରାମରେ ଗୋଟିଏ ଜଳାଶୟର ମଧ୍ୟରେ ଅନନ୍ତଶଯ୍ୟା ମନ୍ଦିର ପ୍ରତିଷ୍ଠିତ । ଏହି ସ୍ଥାନର ଦୃଶ୍ୟ ଅତୀବ ମନୋମୁଗ୍ଧକର । ଏପରି କଅବଣ ସମ୍ବଲପୁର ଜିଲାରେ ଅନ୍ୟତ୍ର ବିରଳ ।

( ୫ )

ଛତେଖାପଲା ଚଢେ ଧୂଳା ପଢଣ ସକଳେ ,
ଲୁଦ୍ରାକ୍ଷେଙ୍କ ମନ୍ଦିରେ କରି ଅଭିଷିକ୍ତ—
ଯାହାଙ୍କୁ , ଉହ୍ଲୀ ନନ୍ଦ ପଡ଼ୁଅ କୂପରେ ୧
ସଫଳ ହୁଅନ୍ତି ଭକ୍ତି ପ୍ରେମ ଅନୁସାରେ ;—
ଏକଣ୍ଠାସେ ଶଙ୍ଖପୂରି କରି ପଞ୍ଚକ୍ରମା
ଯା ସେବକ କରି ନେଲ ସେବାଭୂମି ସୀମା ; ୨
" ବାଲୁଙ୍କେଶ୍ୱର ", " ବଗଡ଼ବାଲୁଙ୍କେଶ୍ୱର "ଙ୍କୁ
ପୂଜିବ ସମ୍ବଲେ ପୁଣି ଗାଉସମା ଗ୍ରାମେ ।

( ୬ )

ମହାବୀର ଧର୍ମବୀର ମହାଦାନବୀର ,—
ବଳିଆର ସିଂହଙ୍କର କୀର୍ତ୍ତିସ୍ୱରୂପେ
ବିସ୍ତୃତ ଯେ ମନ୍ଦିର ବିପୁଳ ବିଭବେ ;
ସମ୍ବଲର ଶ୍ରେଷ୍ଠମଠ ଯୋଗୀଭୋଗୀ ପାଇଁ
ଖଞ୍ଜା ଯହିଁ ସଦାବ୍ରତ ; ମହାଗୁହାଙ୍କର—୩
ଶ୍ରୀଗୁରୁ ମହନ୍ତ ଯହିଁ ଶିଷ୍ୟାନୁକ୍ରମରେ
ବସନ୍ତି ନୃପତି ସମ ଭୁଞ୍ଜି " ଭୋଗରାଗ " ;
ସେହି " ଗୋପାଳଜି ମଠ " ଇଷ୍ଟ କି ଶୁମୂର ? ।

---

୧ ସମ୍ବଲପୁର ନନ୍ଦପଡ଼ା ଅନ୍ତର୍ଗତ ମହାଦେବଙ୍କ ନାମ ବାଲୁଙ୍କେଶ୍ୱର ; ଏହାଙ୍କ ଦେଉଳ ନନ୍ଦାପଡ଼ାର " ଶୀତଳଷଷ୍ଠୀ " ଉତ୍ସବ ହୁଏ ।

୨ ଅଷ୍ଟଶମ୍ଭୁରୁ ଏକଶମ୍ଭୁ "ବଗଡ଼ବାଲୁଙ୍କେଶ୍ୱର" ନାମରେ ଗାଉସମାରେ ପ୍ରତିଷ୍ଠିତ । ଏହି ମନ୍ଦିରର ପୂଜାରୀ ଏକଣ୍ଠାସରେ ଶଙ୍ଖପୂରି ଯେତେଦୂର ଶୁଣା ଯାଇଥିଲା , ସେହିସବୁ ଭୂମି ମହାଦେବଙ୍କ ନାମରେ ଲିଖିତ ହେଲା ।

୩ ସମ୍ବଲପୁରସ୍ଥ ଗୋପାଳଜି ମଠ , ମହାରାଜା ବଳିଆର ସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ । ଏହି ମଠର ଅଧୀନରେ ବଲବବପୁର ତୁଲ୍ୟ ଅନେକ ଗ୍ରାମ ଅଛି । ଗୋପାଳଜି ମଠର ମହନ୍ତମାନଙ୍କ ଠାରୁ ରାଜାମାନେ କଣ୍ଠିମନ୍ତ୍ର ଗ୍ରହଣ କରୁଥିଲେ

( ୭ )

କେଉଁ କଳସ ଶୋଭିତ ଚୂଡ଼ାର ମନ୍ଦିର ,
ଶେଷ ମହାରାଣୀଙ୍କ ଯେ ଦିବ୍ୟ କୀର୍ତ୍ତିସ୍ତମ୍ଭ ;
( କଳାହାଣ୍ଡି—ମହାରାଜ—ଜେମାମଣି ଯେହୁ ) ?
ଯେ ବିଦେଶୀ ବଣିକଙ୍କ ବ୍ୟବସାୟୀ ସ୍ଥଳେ
ମୁକୁଳୋଇ ଗର୍ବ୍ବ ଛିନ୍ନ ଓଡ଼ିଆଙ୍କ ପ୍ରତି ;
ସମ୍ବଲ—ସନ୍ତାନଙ୍କର ସେବକ କେମନ୍ତ ?
କୁଥାଭବ ଅଶାସିନ । " ମଦନ ମୋହନ " ! ୧
ସମ୍ବଲପୁରଅ—ଲଗେ ସେ ସୁଯୋଗ କାହିଁ ?

( ୮ )

ଖାଇ ଭକ୍ତି ତେଜ ଯହିଁ ଏକା ଜଗନ୍ନାଥ—
ଦରଶନ ପାଇବାକୁ ପତନ ମାନବେ ;
" ଦଧିବାମନ " ନାମେ ସେ ପ୍ରସିଦ୍ଧ କଥିତ ।
ସୂରଜ୍ଞ ଯେବେ ସମ୍ବଲ ଦଧିବାମନଙ୍କ ,
କଟଣ ପଡ଼ାକୁ ଯାଇ କର ଦେବ ଦର୍ଶନ ।
ଭଠଲ—ଦଧିବାମନେ ମନାସିଛ ଯେବେ ,
ଦେଖ ସେ ମୂର୍ତ୍ତି ; ନ ଲଗେ ଯାକୁ ଭାତ ଭୋଗ
ଭକ୍ତ ପରମାନନ୍ଦଙ୍କ ମଠ ରକ୍ଷା ଅର୍ଥେ । ୨

---

୧ ସମ୍ବଲପୁର ମାରୱାଡ଼ୀ ପଡ଼ା ଅନ୍ତର୍ଗତ ମଦନ ମୋହନ ଗୁଡ଼ି । ଏହା ସମ୍ବଲପୁରର ଶେଷ ମହାରାଜା ନାରାୟଣ ସିଂହଙ୍କର ପାଟରାଣୀ କଳାହାଣ୍ଡି ରାଜ--କୁମାରୀଙ୍କର କର୍ତ୍ତୃକ ପ୍ରତିଷ୍ଠିତ ।

୨ ଭଠଲରେ " ପରମାନନ୍ଦ ସାହୁ " ନାମରେ ଜଣେ ସଦାବ୍ରତ ଦାତା ଥିଲେ । ତାଙ୍କର ସଦାବ୍ରତ କାହାଣୀ ଦେଶବିଦେଶରେ ପ୍ରଚାରିତ ହେବାକୁ ଲାଗିଲା । ଏକଦା ଏକଦଳ ନାଗା ଅସି ଉପସ୍ଥିତ ହେଲେ । ସେତେବେଳେ ପରମାନନ୍ଦଙ୍କର ଭଣ୍ଡାର ଏକାବେଳକେ ଶୂନ୍ୟ ହୋଇ ପଡ଼ିଥିଲା । ପରମାନନ୍ଦ ଉପାୟାନ୍ତର ନ ଦେଖି , ଉପରକୁ ଅନାଇଁ , ଦୀର୍ଘନିଃଶ୍ୱାସ ଛାଡ଼ି ଗୋଟିଏ ବୋଝ ଧାନ , ଘରର

( ୯ )

ତପସ୍ୱି ହା ଧରଣୀ ଯେ ଦେବତାଙ୍କ ସିଂହ ;
ଯା ମହିମା ଶିଖରେ ହୋଇ ଆକର୍ଷିତ
ପୁଣ୍ୟକାମୀ ଦମ୍ପତିଏ ଆସି ଦଳେ ଦଳେ ,
ବରପାଇ ଚଳିଯାନ୍ତି ମହିମା ବଖାଣି ;
ପ୍ରକୃତି ଅଙ୍କରେ ଦୃଷ୍ଟ ହୋଇ ଯେ ବାହାର
ବୋହାରକୁ ପାନେ ପୁଷ୍ଟି କରନ୍ତି ଭକ୍ଷଣ
ପିଣ୍ଡଦସ୍ୱ , ବଣ୍ଟାସିଙ୍କ ବସ୍ତ୍ର ବଢ଼ାଇ ;
ସେ " ପାଟ୍‌ଣେଶ୍ୱରୀ " ଙ୍କୁ ଥିବ କଲଙ୍କ ସ୍ମରଣ ?

---

ବାଉବାଟେ ଦେହକୁ ଧଳାଇ ଗଲେ । ତେଣେ ତାଙ୍କର ମନ ସ୍ଥିର ହୋଇ ରହିଲା ନାହିଁ । ଏଣେ ନାଗାମାନେ ପରମାନନ୍ଦଙ୍କ ହାତମାରି ବସିଲେ । ଘରେ ତାଙ୍କ ପୁତ୍ରବଧୂ ଏକାକିନୀ ଥିଲେ । ଏହି ସମୟରେ କାନ୍ଥବାଡ଼ ଡେଇ ଖୋଡ୍ର-କାନ୍ଥରେ ପରମାନନ୍ଦ ବେଶରେ ଜଣେ ଉପସ୍ଥିତ ହୋଇ , ବଧୂକୁ ଡ଼ାକି କହିଲେ " ନାଗା-ମାନଙ୍କ ପାଇଁ ସିଧା ଠିକ୍‌କର " । ବଧୂ କହିଲେ " କଣ କରିବ କିଛି ନାହିଁ?" ବୁଢ଼ା କହିଲେ "ମଞ୍ଜାଘରକୁ ଦେଖ ତ ଥରେ କିଛି ବା ଥିବ ?" ବଧୂ ଆଉ ଦ୍ୱିରୁକ୍ତି ନକରି ମଞ୍ଜାଘରକୁ ଯାଇ ଦେଖିଲେ ଯେ , ସେଠାରେ ହାଣ୍ଡିମାନଙ୍କରେ କିଛି କିଛି ଡାଲି , ଚାଉଳାଦି ଅଛି । ସେ ତହିଁରୁ ଚାଉଳାଦି କାଢ଼ିବାକୁ ଲାଗିଲେ । ଆଶ୍ଚର୍ଯ୍ୟର ବିଷୟ ଯେଉଁ ପାତ୍ରରୁ ଯେତେ ବାହାର କରୁଅଛନ୍ତି, ସେତେ ବାହାରୁ ଅଛି । ପରମାନନ୍ଦ ନାଗାମାନଙ୍କୁ ସମ୍ପୂର୍ଣ୍ଣ ସିଧା ଯୋଗାଇ ଦେଇଣ ଚାଲିଗଲେ ତାଙ୍କୁ ଆଉ କେହି ଦେଖିପାରିଲେ ନାହିଁ । ନାଗାମାନେ ପରମାନନ୍ଦଙ୍କ ଜୟନାଦ କରି , ଭୋଗ ବନାଇବାକୁ ଲାଗିଲେ । ତେଣେ ପରମାନନ୍ଦ ସାହୁ ଯୋଗାଡ଼ ପାଇଁ ଅନ୍ୟ ଠାରେ ନାଗାମାନଙ୍କର ରନ୍ଧାବଧାନ ଦେଖି ବିସ୍ମିତ ହୋଇ ସେହି ଖୋଡ୍‌କାନ୍ଥରେ ଘରକୁ ଫେରି ବଧୂଙ୍କୁ ପଚାରିଲେ " ନାଗାମାନଙ୍କୁ କିଏ କଣ ଦେଲା ? " ବଧୂ କହିଲେ " ଏ କ୍ଷଣି ତ ତୁମ୍ଭେ ଦେଇ ସେମାନଙ୍କୁ ଦେଲ , ପୁଣି ମୋତେ କଥାର ପଚାରୁଛ?" ବୁଢ଼ା କହିଲେ ମୁଁ ତ ଏବେ ଆସିନାହିଁ, ସେଠାରେ ଲୁଚିଥିଲି । " ବଧୂ ଚକିତା ହୋଇ ଉତ୍ତର କଲେ . " ତୁମ୍ଭେ ଏହି ଖୋଡ ଡେଇ-ଆସି , ମୋତେ ମଞ୍ଜାଘର ଦେଖିବାକୁ କହିଲ ଏବଂ ମୁଁ ଯାହା ବାହାର କରିଦେଲି,

( ୧୦ )

ବିମଳ—କମଳା—ମହାନଦୀ—ତୀର—ସ୍ଥିତ ,
ଅନନ୍ତ ମହିମାଶାଳୀ ବୃଷଭ—ବାହନ ,
ଉମାଭର୍ତ୍ତେ " ହୁମା " ଠାରେ ବିହାରି କି ପ୍ରୀତ
ବଞ୍ଚେ କରିଛନ୍ତି ସୁଖେ ଯେ ମଞ୍ଜୁ ମନ୍ଦିରେ ;
ଜଗତ ସ୍ଥପତି ଅଦ୍ୱୈତଭକ୍ତିକୁ ପୂଜିତ
ଘେନନ୍ତି ଯେ ପୂଜାଙ୍କୁ ଗୌରବ ବର୍ଦ୍ଧନେ ;
ଶିବସର୍ଗି ମହୋତ୍ସବ ମଧ୍ୟ ଦରଶନ—
କରିବାକୁ ସୁରଲଭ " ହୁମଲେଶ୍ୱର " ଙ୍କୁ ? ୧

( ୧୧ )

ଯା ଚରଣୋଦକ ଲଭି ପବସା , ମାଲତୀ—
ମନୋହର ଲୋହିତମଧୁ ସଂକ୍ରମ—ଧାରିଣୀ ,

---

ତେଣୁ ନାରାୟଣଙ୍କୁ ଦେଖି ବିଦାୟ କଲ ।" ପରମାନନ୍ଦଙ୍କ ଅଉ ସନ୍ଦେହ ରହିଲା ନାହିଁ । ସେ ବନ୍ଧୁଙ୍କ ପାଦ ଧରି ସାଷ୍ଟାଙ୍ଗ ପ୍ରଣିପାତ କରି ଈଶ୍ୱର ପ୍ରେମରେ ଅଧୀର ହୋଇ କାନ୍ଦିକାନ୍ଦି କହିଲେ "ତୁମ୍ଭେ ଭଗବାନଙ୍କୁ ଦେଖିଲ, ମୁଁ ଅଭାଗା, ମୋତେ ଦର୍ଶନ ମିଳିଲା ନାହିଁ ।" ରାତିରେ ସ୍ୱପ୍ନ ହେଲା ; ସେହି ସ୍ୱପ୍ନର ବୃତ୍ତାନ୍ତ ଅନୁସାରେ ଉକ୍ତ ହୋଇଥିବା ଦଧିବାମନ ମୂର୍ତ୍ତି ପୂଜା ହୋଇ ସେହି ଦିନରୁ ଭଟଲିରେ ରହିଲେ । ଅଉ କୋଟିଏ କିମ୍ବଦନ୍ତୀରେ ତାଙ୍କୁ ହାତଲେଖା ନ ଲାଗିବା ଏବଂ ବାଳରୋଗ ଲାଗିବାର ବିବରଣ ମିଳେ । ପରମାନନ୍ଦଙ୍କ ବଂଶଧରମାନେ ଆଜି ସୁଦ୍ଧା ଭଟଲିର ଗୌନ୍ତିଆ । ତାଙ୍କ ବଣ୍ଟିଆ ଲୋକେ ପରମାନନ୍ଦ ସାହୁଙ୍କ ବଂଶଧର ବୋଲି ଆପଣାକୁ ଗୌରବାନ୍ୱିତ କରିଥାନ୍ତି ।

୧ ହୁମା ହୁମଲେଶ୍ୱର ମନ୍ଦିରର ସ୍ଥାପୟିତା ମହାରାଜା ବଳିଆର ସିଂହ ବୋଲି " ସମ୍ବଲପୁର ଗେଜେଟିୟର " ରେ ଉଲ୍ଲେଖ ଅଛି ; କିନ୍ତୁ ଉକ୍ତ ମନ୍ଦିର ୮୦୦ ବର୍ଷରୁ ଅଧିକ କାଳ ହେଲା ସ୍ଥାପିତ ହୋଇଥିବା ଏବଂ ତାହା ଓଡ଼ିଶା ମହାରାଜା ଅନଙ୍ଗଭୀମଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା ତଥ୍ୟ କୋଟିଏ ତାମ୍ର—ଫଳକରୁ ଜଣାପଡ଼େ । ପଧାରି ହୋ ତାଙ୍କ ପୂଜା ଅଗେ ହୋଇ , ତାଙ୍କର ଛଡ଼ା ଫୁଲମାଳ ନେଇ, ମହାଦେବଙ୍କୁ ପୂଜା କରାଯାଏ । ଏହି ଦୃଶ୍ୟ ଶିବସର୍ଗିରେ ହୁଏ ।

ଯା ପ୍ରସାଦ ନିତ୍ୟ ଖାନ୍ତି ସଦାବ୍ରତ ଛଳେ ;
( ବନ୍ଧୁ ଅଛି ନିୟୋଟିଙ୍କ ଉପସ୍ଥିତ ତାହା )
ଅକ୍ଷୟମୂଳକର ମଧ୍ୟେ ଯେ ଅଛେ ଗଣିତ ୧
ସ୍ଥାପିତ ଯେ ଦେବାନଙ୍କ ପରାମର୍ଶ—ମନ୍ତ୍ରେ ,
ସମ୍ବଲର ଧର୍ମଦଣ୍ଡ ଗଚ୍ଛିତ ସମ୍ବଲେ ;
ସେହି " ମାନେଶ୍ୱର " ଭଜ ! ମନସ୍ତ କି ଶିବ ?

( ୧୨ )

ସେ ତାଲେ ହନୁମନ୍ତ ପଦେ ଯାହାଙ୍କୁ ସ୍ୱଘର
ସ୍ଥାପି , କରିଥିଲେ ଶୁଭେ ଲଙ୍କା ଅଭିଯାନ ;
ଯାର ପ୍ରତିମୂର୍ତ୍ତି ଇବ—ଭେଦନ ସଙ୍ଗମେ
ବସିଛନ୍ତି ସମପୁନ—ଇଷ୍ଟଦେବୀ ରୂପେ ;
କୁଲତା—କୁଳ—ପାବନୀ ୨ କର ପ୍ରଦାୟିନୀ ,
କମଳା—ଲପଙ୍ଗା—ମୁଖ—କୁଲଣ୍ଡା—ବାସିନୀ ,
ଦସ୍ୟୁଣା—ମନ୍ଦାର—ମାଳା—ଧାରିଣୀ , ତୋଷଣୀ ,
ସେ " ସମଚଣ୍ଡୀ " ଙ୍କି ନନା ! ବାଞ୍ଛିତ କି ସତେ ? ୨

( ୧୩ )

ହନୁବର ହୋତାଙ୍କର କଷ୍ଟଧାଷ୍ଟା ଦେଖି , ୩
ସ୍ୱପ୍ନେ ତାଙ୍କୁ ଅଜ୍ଞା ଦେଇ ଫୁଟି ଯେ ସ୍ୱମୂର୍ତ୍ତିରେ ,
" ସ୍ୱପ୍ନେଶ୍ୱର ବାବା " ନାମେ ହେଲେ ଅଭିହିତ ;
ପ୍ରାଣେଶଙ୍କ ଅବହେଲେ ନାହିଁ ଯା କୁ—ଧନ ,

---

ସମ୍ବଲପୁରର ଦେଓ୍ୱାନ ଦକ୍ଷିଣ ରାୟଙ୍କ ପରାମର୍ଶରେ ଧର୍ମ ଓ ତାହା ସମ୍ବନ୍ଧୀୟ ଅର୍ଥଦଣ୍ଡର ସଞ୍ଚିତ ଅର୍ଥରେ ଅକ୍ଷୟମୂଳ ସ୍ଥାପିତ ।

୨ ସମଚଣ୍ଡୀ କୁଲତା ଜାତିର ଇଷ୍ଟଦେବତା । ତାଙ୍କ ବ୍ୟତୀତ କୁଲତାମାନଙ୍କୁ ଭେଟ ଓ ପଧାନ, ସମଚଣ୍ଡୀଙ୍କର ପାଣିପ୍ରସାଦ ଦେଇ ସଂସ୍କାର କରିଥାନ୍ତି ।

୩ ହୁମା ବିମଳେଶ୍ୱରଙ୍କ ଅନୁଭକ୍ତ ବଟେଶ୍ୱର ହୋତା ପ୍ରତ୍ୟହ ମହାନଦୀ ପାରହୋଇ , ବିମଳେଶ୍ୱରଙ୍କୁ ପୂଜା କରି ଆସି , ଆହାର କରୁଥିଲେ । ତେଣୁ ମହାଦେବ ସ୍ୱପ୍ନାମ୍ନାୟରେ ଅବତୀର୍ଣ୍ଣ ହୋଇଥିବା ଜନଶ୍ରୁତିରୁ ଜ୍ଞାତବ୍ୟ ।

ମାଗିଯାଚି ଚଳାନ୍ତି ଯେ ନିତ୍ୟାଣି ନିୟୋଗ ;
ଯାଙ୍କୁ ସେବ ଯୋଗନନା ପାଉଥିଲେ ଯୋଗେ ,
ଅତ୍ୟନ୍ତ ଆସ୍ଥାରେ କରି ମୋ ମନ୍ଦାନ୍ତ ବ୍ରତ ,
ସେ ଦେବଙ୍କ ନାମେ ଦେଲେ ମୋର ନାମ ଦେଣୁ ।

( ୧୮ )

ଭ୍ରମ ତରଙ୍ଗ—ମାଳିନୀ ଭବ ଶୈବଳିନୀ
ପ୍ରକ୍ଷାଳେ ଯା ପାଦତଳ ଉଚ୍ଛଳେ ତରଙ୍ଗେ ;
ପ୍ରାଚୀନ ଧୂସର କ୍ଷୁଦ୍ର ଦେଉଳ ସୁନ୍ଦର ,
ତହିଁ ବସି ଦେଖନ୍ତି ଯେ ବ୍ରାହ୍ମଣଙ୍କ ରଙ୍ଗ ,
ବନସ୍ପୃଥୁମରେ ଉଙ୍କି କରି ନେସବସ୍ତୁ ;
ଦେବେ ବୋଲେ ସ୍ୱଜନସ୍ଥାପିତ ବୋ ବୋଲଇ ନୁହେ
ବାପଲବସ ଗ୍ରାମରେ ବଢେ " ମାନଯାତ୍ରା "
ସବେ ବିଶ୍ୱାନ କର ମୋତେ ସିଦ୍ଧ ମନୋରଥ ?

( ୧୯ )

ପ୍ରସ୍ତର—ପ୍ରାଚୀର—ଦୁର୍ଗ ମଧ୍ୟେ ମନୋହର ,
ବନ ତରୁଲତା ପୂର୍ଣ୍ଣ ଶାନ୍ତିମୟ ସ୍ଥାନ , [1]
ଦେଖି ଯେ ଫୁଟିଲେ ଗିରି ଗର୍ଭ ଏହି ଭେଦ ;
ଝର—ଶୀତପୂତ—ନୀରେ ନିତ୍ୟ ରହି ମଗ୍ନ ,
ଶୀତଳନ୍ତ କ୍ଷୀଣ—ସିନ୍ଧୁ ନୀର—ତାତ ଗର୍ବ—
ଦାରୁଣ—ଯନ୍ତ୍ରଣା , ଯେହୁ ପ୍ରାପ୍ତ ଉମା ସଙ୍ଗେ ,
ସାଧ ଯୋଷ୍ଠା ସନ୍ଧ୍ୟା ଭୁଞ୍ଜି ନନ୍ତ ଉଦାରେ ;
ସେ " କେଦାର ନାଥେ " ଦେଖ ଅମ୍ବବଣ ଗ୍ରାମେ

---

୧ ବାଘପାହାଡ଼ର ପାଦଦେଶରେ ଗୋଟି ଏ ପ୍ରାଚୀନ ଦୁର୍ଗମଧ୍ୟରେ ଗୋଡ଼ଗ କଲାଣପୁର ଐଶାନ୍ୟ କୋଣରେ କେଦାରନାଥଙ୍କର ମନ୍ଦିର ପ୍ରତିଷ୍ଠିତ । ଜାଲପାଲ ଓ ସପ୍ତଧାରା ସ୍ଥାନଦ୍ୱୟ ଅତ୍ର ମହାଦେବଙ୍କ ମାହାତ୍ମ୍ୟ । ଏ ଅଷ୍ଟଶମ୍ଭୁ ଅନ୍ତର୍ଗତ ।

୨ ଅମ୍ବବଣ ( ବନ ) ରୁ ଅମ୍ବାବେଡ଼ା ହୋଇଅଛି ।

(୧୬)

ପ୍ରାନ୍ତରେ ଯେବେ ଜଳ—ହରିତ—ଗନ୍ଧେ
ଫୁଲଭଣ କାଠୀ—ତୃଣ, ଗୁଡ଼ାଉଣକୁଳ ,
ଉନ୍ମତ୍ତ ଚରିଣ ଖାଦ୍ୟ ଥାଏଁ ଅସମ୍ଭାଳେ ,          !
ଦୃଗ—ଚକୋରୂଳ—ମଣ୍ଡି ବାଃ—ସିନ୍ଧୁ—ପାଶେ ,
ଭେଟନ୍ତେକେଲେ ସେହି ପ୍ରେମ ଉଜ୍ଜ୍ୱଳ—ମୂର୍ତ୍ତି—
ଦେଖେଯେ ମଦଘୂର୍ଣ୍ଣିତ ବିସ୍ମୟ ଅମୃତେ ;
ସଙ୍କ୍ରି ସର୍ପବେଷ୍ଟିତ ସେ ବୈଦ୍ୟନାଥଙ୍କୁ
ଦେବଗ୍ରାମ [୧] ଉପକଣ୍ଠେ କର ଦରଶନ ।

(୧୭)

ଶିଳାଖାସ୍ୱଗାର [୨] ହୁମଗିରି ଅଧିବାସୀ ,
ବଳପଣ୍ଡୁ ରୁଧିର ମଣ୍ଡପଚାରିଣୀ ,
ଶାର୍ଦ୍ଦୂଳବାହିନୀ, ନରରକ୍ତ ପିଯାସିନୀ ,
ଥିଲେଯେ କେଶରୀ ବଂଶ—ଅଧି ଅଧିଦେବୀ ;
ଦାନବୀର ଧର୍ମ୍ମବୀର ଚନ୍ଦନ ସିଂହଙ୍କ
କାଷ୍ଠଭକ୍ତି ବଳେ ତୃଷ୍ଣା ବୋଧ ଯେ ନରକ୍ତେ ,
ପ୍ରଦାନନ୍ତ୍ର ବସ୍ତ୍ରାଧୃ ପଶ୍ୱ ବଳିଦାନା ,
ସେ ମାଣିକେଶ୍ୱରୀ ଦେବୀ, ଦଶରା ଉତ୍ସବେ ।

(୧୮)

କୋଇଲାକନାର କୋଇଲାର ଘୀନବନେ [୩]
ବସନ୍ତ ଯେ ଭଗ୍ନଦେବେହ ଭଗ୍ନପ୍ରସ୍ତରିନେ

---

୧ ବରଗଡ଼ ନିକଟସ୍ଥ ଦେବଗାଁରେ ଅଷ୍ଟଶମ୍ଭୁ ଅନ୍ତର୍ଗତ ଶ୍ରୀ ବୈଦ୍ୟନାଥଙ୍କ ମନ୍ଦିର ପ୍ରତିଷ୍ଠିତ ।

୨ ଗାଙ୍ଗପୁର ରାଜ୍ୟାନ୍ତର୍ଗତ ହୁମଗିରି ଜମିଦାରୀରେ ପଥର ଖୋଳା ଅଛି । କୋଠରୀ ଏ, ସେଥି ସକାଶେ ସେଠାର କେତେକ ସ୍ଥାନରେ ଉତ୍କଳଲିପି ଦେଖାଯାଏ ।

୩ କୁଇଲ ନାମକ ନଦୀକୂଳରେ ନାଗଡ଼ା ଜମିଦାରୀର ପ୍ରାଚୀନ ରାଜଧାନୀ ଓ ଦୁର୍ଗ ଥିଲା । ସେହି ଭଗ୍ନଦୁର୍ଗ ମଧ୍ୟରେ କୋଇଲେଶ୍ୱରୀଙ୍କ ଭଗ୍ନ ମନ୍ଦିର ଅଛି ।

ପ୍ରକାଶି ସମ୍ବଲପୁର କାହାଣି ପାଠକ,
ଜଣାଇ ପୁଣି ଧର୍ମୀ ଦୁଷ୍ଟ ନଷ୍ଟ ଭୃତ୍ୟ,
ଯା ପ୍ରସନ୍ନେ କ୍ଷୁଦ୍ର ଶୂଦ୍ର ହେଲେ ମହାକବି ;
( ଟୋରଲାଦାସ ନାମେ ଯେ ପ୍ରସିଦ୍ଧ ଉତ୍କଳେ )
ଘନବନ—ନିବାସିନୀ ନାଗବଂଶ୍ୟାଶୀ
ନୃତ୍ୟନ୍ତି “ ହଂସେଶ୍ୱରୀ ” ସେ ହଂସେଶ୍ୱରୀ ।

( ୧୯ )

ସହସ୍ର ସହସ୍ର ପଶୁପକ୍ଷୀ—ବଳ—ଦେଇ
ପିଠ, ବସିଛନ୍ତି ଯେଉଁ ଠିକର ମୋଡ—
ବାହାନର, ନିତ୍ୟନାମ ମହିମା ବଢ଼ାଇ ;
ସେ “ ଯମନପାଠ ” ୧ ଏବେ ଠିକର ଗୋସାଇଁ
ନାମେ ସେହି ଅଞ୍ଚଳରେ ହୋଇଛନ୍ତି ଖ୍ୟାତ ।

( ୨୦ )

ସଂକୀର୍ତ୍ତି—ଠାକୁର—ପୀଠେ ଯୁଗ ଯୁଗାନ୍ତରୁ
ବସି ଦେଖୁଛନ୍ତି ଯେଉଁ ଦ୍ୱିଜଙ୍କ ସଂଗ୍ରାମ,—
ନୀଚସ୍ୱାର୍ଥ ରକ୍ଷକିତ, ଅଗ୍ନି ପାଇଁ ଯଥା,
ଗ୍ରାମ୍ୟସିଂହ ଦଳମିଳ କରିଥାନ୍ତି ବଳ,
ସେ “ ବ୍ରହ୍ମବାସିନୀ ” ନ୍କୁ ନମ କରନ୍ତୁ ଭାବନା ?

( ୨୧ )

ସହସା ପୃଥିବୀ ଫାଟି ବାହାରି ବଦର,
ଭାସି ଦେଉଥିଲା ପୂର୍ବେ ବଳ ମାନବଙ୍କୁ
ଯାହାର ପ୍ରଭାବେ ; ସେହି ଦେବୀ ସୁରେଶ୍ୱରୀ
ସୁନ୍ଦରପୁର ଯାଇ ଥରେ କର ଦରଶନ ।

---

ନାଗସ୍ତ ଛତିଶଗଡ଼ ହଂସେଡ଼ ଅଞ୍ଚଳରୁ ଅସିଅଛନ୍ତି ।

୧ ସଦର ତହସିଲ ଅନ୍ତର୍ଗତ ବାହାମ ଗ୍ରାମରେ “ ଯମନପାଠ ” ଅଛନ୍ତି । ପୂର୍ବେ ସେହି ଠିକର ( ମୈଦାନ ) ରେ ଜଣେ ଗୋସାଇଁ ରହୁଥିଲେ । ଲୋକେ ତେଣୁ ଉକ୍ତ ଦେବତାଙ୍କୁ “ ଠିକର ଗୋସାଇଁ ” ବୋଲୁଅଛନ୍ତି ।

( ୨୨ )

ପଶ୍ଚିମ ପଥରେ ଲକ୍ଷ ବର୍ଷେ ଗଣାଇଲେ
“ ଜ୍ଞାନଗୁଣାକର ” ମହାଦାନୀ “ ଧର୍ମ୍ମନିଧି ”
ବିପୁଲ ବିଭବ-ବନ୍ତ ଯାଙ୍କ “ ମହାରାଜା ” ୧
ସାର୍ କେ. ସି. ଆଇ. ଇ. ଏମ୍. ଆର୍. ଏ. ଏସ୍. ଗୁଲ୍‌ଟପ୍ ।
ବୀର ମିତ୍ରୋଦୟ ସିଂହ ପୂଜନ୍ତି କଷ୍ଟାବେ ;
ଯାଙ୍କ କୃପାବଳେ ଶକ୍ତି ପ୍ରସୂ ଶକ୍ତିପୁରେ
ବୁଝନ୍ତି ପ୍ରଜାଏ ସଦା ଭୁକ୍ତି ସୁଖଶାନ୍ତି ;
ହେଲା ବାଞ୍ଛା ମନାସିଲେ ସେ ସୁବର୍ଣ୍ଣମେରୁ ୨

( ୨୩ )

ଲକ୍ଷ୍ମୀଙ୍କର ଅନ୍ତଃପୁର ହୋଇବାରୁ ତହିଁ,
ଅନ୍ତାପଲ୍ଲୀ ନାମ ପଲ୍ଲୀ କଥିତ ସମ୍ବଲେ ; ୩
ସେହି ଅନ୍ତାପଲ୍ଲୀ ଗ୍ରାମେ ସେତାନଧେ ଥାଇ,
ପଶ୍ଚିମ ମୁଖରେ ଯେହ୍ନେ ବସିଛ ଭୂତଳେ
ଅପ୍ରମାଦନ୍ତ ପଦ୍ମାକର ଶାଖାର ବେଷ୍ଟିତ
“ ବୁଢୀସାଗର ” ର ସ୍ୱଚ୍ଛ ସଲିଳ—ଶୀକରେ ;
ଶାନ୍ତିକେ ଯାହାର ହେଷ ଦଗ୍ଧ କଳେବର

---

୧ ସୋନପୁରର ବର୍ତ୍ତମାନ ମହାରାଜା ଶ୍ରୀ ବୀର ମିତ୍ରୋଦୟ ସିଂହ ଦେବ ବଂଶଗତ ମହାରାଜା ଉପାଧି ପାଇଅଛନ୍ତି ।

୨ ଜଣେ ଯୋଗୀ ସାଧୁ ଜନ ବଉଦ ସୀମା ତେଲନଦୀଙ୍କ କୋଟି ଏ ପଥରରେ ବ୍ରାହ୍ମଣ ଘଷି ଦେଖିଲେ ଯେ ତାହା ସୁନା ହୋଇଯାଉଛି । ସେ ସ୍ୱପ୍ନାଦେଶ ଅନୁସାରେ ସୋନପୁର ସୀମାରୁ ଶିଳାଖଣ୍ଡକୁ ଆଣି ଅର୍ପିଲେ । ସୋନପୁରରେ ଅପାରଧନ ସୁନା ବୃଷ୍ଟି ହୋଇଥିଲା ।

୩ ସମ୍ବଲପୁର ମହାରାଣୀଙ୍କର ପିତୃ ଘର ଗ୍ରାମ ଅନ୍ତାପଲ୍ଲୀରେ ଦେମାର ଥିଲା । ଏଠାରେ ବୁଢାସାଗର ନାମକ ପୁଷ୍କରିଣୀ, ସମ୍ବଲପୁର ଜିଲ୍ଲାମଧ୍ୟରେ ବୃହତ୍ତମ । ଅନ୍ତାପଲ୍ଲୀର ବର୍ତ୍ତମାନ ଗୌନ୍ତିଆ ଶ୍ରୀ ପଦ୍ମଲୋଚନ ପଣ୍ଡାଙ୍କର ମଧ୍ୟମପୁତ୍ର ଶ୍ରୀଯୁକ୍ତ ଗୋକୁଳାନନ୍ଦ ପଣ୍ଡାଙ୍କର ସାହାଯ୍ୟ ଓ ରତନାଶୀନ ଉଲ୍ଲେଖଯୋଗ୍ୟ । ତାଙ୍କ ଘରରେ ଅନ୍ତାପଲ୍ଲୀରେ ଶୀତଳଷଷ୍ଠୀ ଯାତ୍ରା ପ୍ରଚଳିତ ।

ଦୁହାସାଗରରୁ ଅପି ଶୀଳ ଜଳଜାତ ;
ସ୍ୱଦେଶ—ସ୍ୱଜାତିପ୍ରାଣ ଶ୍ରୀ ଗୋକୁଳାନନ୍ଦ ,
ଭକ୍ତମନା ଶାନ୍ତଚେତା ସାହିତ୍ୟ—ରସିକ ,
ମୂର୍ଜନ୍ମ ଯାହାଙ୍କ ନବଉତ୍ସବ ହୃଥର ;
ସେ ପଣ୍ଡିମେଣ୍ଟଙ୍କୁ କି କରୁ'ଛ ସ୍ମରଣ ?

(୧୪)

କେଉଁ ଗନ୍ଧଙ୍କ ଭାଇ, ବାଞ୍ଛିତ ମାଳେସ
କେତେ ରାମଚନ୍ଦ୍ରଙ୍କୁ ସମ୍ବଲ—ଜଗତେ ?
ଶେଷ ମହାରାଣୀଙ୍କ ଯେ କୀର୍ତ୍ତିସ୍ତମ୍ଭ ସମ
ରାଜନ୍ତ ; ତାଙ୍କୁ କି ଭାଇ କର ଅଛ ଧ୍ୟାନ ?
କିବା ବଇରାଗୀ ଦେବ—କୁଳକୀର୍ତ୍ତିସ୍ତମ୍ଭ
ସନ୍ନିଧାନେ ଯାଙ୍କ କୃତ, ନଭ ଅନୁଷ୍ଠିତ
ହୋଇ'ଛି ସ୍ଥାପନ ପୁଣି ପୂଜନ ଯତନେ,—
ବରଗଡ଼େ, ସେ ରାମଙ୍କୁ କରୁ'ଛ ସ୍ମରଣ ?

(୧୫)

ଯେଥି କୁମ୍ଭସାଗରତୀ ଭକ୍ତ—ଭୁକ୍ତ—ମାନେ
ଯାହାଙ୍କ ଚରଣ ନଖ ସୋପାନେ ସୋପାନେ
ନିଷ୍କଳଙ୍କ ପାଦୋଦକ ଲଭିବାର ଲାଗି,
କାଳନ୍ଦୀ-କମଳେ ବସ୍ତେ ଧାଉ'ଛି କି ଭଳି ?
ନାନାମନୋହର ସାନ୍ତ ସୋପାନ ରଚିତ
ଯା' ଦର୍ଶନେ ମୁଗ୍ଧହୋଇ କବି ଗଙ୍ଗାଧର
" ଶ୍ରୀ ସୋମନାଥ ୧ ବିଜୟ " ରଚିଲେ ସାନନ୍ଦେ ।

(୧୬)

ଦଣ୍ଡକା ଅରଣ୍ୟବତ ଘନ ବନ ଦେଖି,

---

୧ ବାଲ୍ୟାଙ୍ଗାପାଢ଼ସ୍ଥ ଶ୍ରୀ ସୋମନାଥଙ୍କର ମନ୍ଦିର ମହାରାଜା ଜନ୍ମନ୍ତ ସିଂହଙ୍କଦ୍ୱାରା ସ୍ଥାପିତ । କଥିତ ଅଛି ଏ, ମହାରାଜା ପ୍ରତ୍ୟକ୍ଷ ମହେଶ୍ୱରଙ୍କୁ ଦର୍ଶନ କରି ଯାଉଥିବାରୁ ତାଙ୍କର ସ୍ୱପ୍ନାଦେଶରେ ସୋମନାଥ ମନ୍ଦିର ସ୍ଥାପିତ ହୋଇଥିଲା ।

ଲୁଚିଲା ବବରେ ଯେବେ ମୂଷିକ ଦାନବ ;
ବଧିବାକୁ ତାକୁ ଯେଉଁ ଗଣ୍ଡଛନ୍ତି ଜଗି ;
ପ୍ରକ୍ଷାଳେ ଚରଣ ଯାର ପ୍ରୟାଗ—ତୀରର ;
ହରନ୍ତି ଯେ ସମ୍ବଲର ନାନା ପାପ ତାପ ;
ଥୁଇଥିଲେ ପାଣ୍ଡୁସୁତେ ଯାହାଙ୍କ ଚରଣ
ବନବାସ କାଳେ ଗଢ଼ି ଶାନ୍ତ ସ୍ଥାନ ଜାଣି ;
ସେ ନୃସିଂହନାଥ କେବେ ଅଛି କହେ ଦେଖି ?

( ୧୭ )

ସୁଲକ୍ଷ୍ମୀ ସମ୍ବଲର ସୀମାନ୍ତ ଦେବତା
ମହାପ୍ରତାପ ଯାହାର ନାନା କିମ୍ବଦନ୍ତୀ—
ପ୍ରଚଳିତ ନରନାରୀ ଜନଶ୍ରୁତି—ମୁଖେ
ସେ ବଣ୍ଡାଣ୍ଡି ଦେବତା କି କରନ୍ତି କାମନା ?

( ୧୮ )

ମହିଷମର୍ଦ୍ଦିନୀ ଦେବୀ ଜଗଦମ୍ବା ଚଣ୍ଡୀ ,
ମହିଷ ରୁଧିର ମଦ୍ୟ ପାନେ ଯେ ପ୍ରମତ୍ତା ;
ମହା ମହିମାଶାଳିନୀ ବର ପ୍ରଦାୟିନୀ ,
ଷୋଳପୂଜା କରେ ଯାର ପ୍ରଜାକ ଉନ୍ମାଦ ;
ଦଶହରେ ଏକାହାରେ ଚଢ଼ି ବଳିଦେନି ;
କୁହୁଥିଁ କୁବେରଗୋଡ଼ ଯାର ଲୀଳାଭୂମି ;
ରଣବାଦ୍ୟପ୍ରିୟା ରଣମତ୍ତା ମା-ଦନ୍ତେଶ୍ୱରୀ
କେଉଁ ମାତ୍ର ମନୋରଥ ସଦା ମୋର ପୂର୍ଣ୍ଣି ।

( ୧୯ )

ବିପୁଳ ଜନକ ଭୂମି ପୂଜକେ ଯାହାନ୍ତି ,
ଧର୍ମପ୍ରାଣ ମହାରାଜା ଅଜିତ ସିଂହଙ୍କ
ଭକ୍ତିରେ ଯେ ବଶ ହୋଇ ସତ୍ୟବାଦୀ ଚେଣ୍ଡ [୧]

---

୧ ମହାରାଜା ଅଜିତସିଂହ, ଅଜିତପୁର ଶାସନ ବସାଇ, ତାଁ ଦକ୍ଷିଣ ମୁଣ୍ଡରେ ସତ୍ୟବାଦୀରୁ ଆଣି ଗୋପୀନାଥଙ୍କୁ ଏବଂ ଉତ୍ତର ମୁଣ୍ଡରେ ନୀଳକଣ୍ଠଙ୍କୁ ସ୍ଥାପିତ କରିଥିଲେ ।

“ ଅଙ୍କିତପୁର ଶାସନେ ” ରହିଛନ୍ତି ସୁଖେ ;
ତେଲିଯାଧୀ ବେଙ୍କଥର ବଂଶ ଦାନଶୀଳ ,
ଯାହାଙ୍କ ମନ୍ଦିର ଶତ, ସ୍ଥାପନ୍ତି ଭକ୍ତାର୍ଥେ ;
ସେ ମୋହନ ବଂଶୀଧାରୀ ଗୋପୀ ପ୍ରାଣବଲ୍ଲଭ
ଶ୍ରୀ ଗୋପୀନାଥଙ୍କୁ ବନ୍ଦେଁ ମନାସି’ଙ୍କ ଘର !

( ୨୦ )

ଚୋ ହସ୍ତ ପ୍ରେତ୍ତ ଶଙ୍କର ସ୍ଥଳ [illegible]
ଦେଖାଇବାପାଇଁ ଧର୍ମ୍ମବାଞ୍ଛ ନରଗଣେ ,
ଯୁଗଳମୂର୍ତ୍ତି ମାତ୍ର ଏକ ପରମାତ୍ମା
ଦର୍ଶକନ୍ତି ଯେହ୍ନ ପୂର୍ତ୍ତି ମହିମା ଦରଶେ ;
କେଉଠାରେ ବୋଡ଼ାସମ୍ବର ସୀମାନ୍ତ ଦେବତା
ପାଟଣା ସୀମାରେ ଅଙ୍କ କରନ୍ତି ବସତି ;
କେତେ କହନ୍ତି କେଶରୀ ବଂଶର ସେ କୀର୍ତ୍ତି ;
ସେ ହରିଚନ୍ଦନଙ୍କ ଭୂମ୍ଭ ଇଷ୍ଟଦେବତା କି ?

( ୨୧ )

କେଉଁ ଜଗନ୍ନାଥ ଘରେ, ମନାସି’ଙ୍କୁ ତୁମ୍ଭେ
ଉତ୍କଳର ସର୍ବସ୍ୱ ମୂର୍ତ୍ତି ଜଗନ୍ନାଥ ?
ଉତ୍କଳର ଅଧିକୃତ ପ୍ରାଚୀନ ଧାରଣା
ଘୃଷ୍ଟନ୍ତି ଏ ସୁସମ୍ବାଦ ଗ୍ରାମେ ଗ୍ରାମେ ଗନ୍ଧୀ ,
ଦେବ ଦେବ ଜଗନ୍ନାଥ ନୀଳାଚଳବାସୀ ,
ଗ୍ରାମ ଗ୍ରାମେ ଜଗନ୍ନାଥ ରଥ ମହୋତ୍ସବ ;
କେଉଁ ଜଗନ୍ନାଥଙ୍କ ସେବା ବନ୍ଧୁ’ଙ୍କୁ ସ୍ମରଣ ?
ବଡ଼ ଜଗନ୍ନାଥ କି ସେ ଛୋଟ ଜଗନ୍ନାଥ ? ୧

---

୧ ପ୍ରାଚୀନ ଉତ୍କଳ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଉତ୍କଳର ସର୍ବତ୍ର ଜଗନ୍ନାଥଙ୍କ ରଥଯାତ୍ରା ହୋଇଥାଏ ।

ସମାପ୍ତ ।